MADHU CAKRA

# ମଧୁଚକ୍ର ।


ଶ୍ରୀ ଚିନ୍ତାମଣି ମହାନ୍ତି

ବରଚତ ।

CINTAMANI MAHANTI


ପ୍ରଥମ ମୁଦ୍ରଣ ।


**Printed By V. Kar.**

The Utkal Sahitya Press.

**CUTTACK.**

**1921.**

ମୂଲ୍ୟ ଦୁଇ ଅଣା । କହି

ଉପହାର ।



ମାତୃସାହିତ୍ୟପ୍ରାଣ, ପୁଣ୍ୟଚେତା,

ଉତ୍କଳ-ହିମାଳୟ ଜନ୍ମାମଶୈଳବାସୀ

ଖିଞ୍ଜିଗଡ଼ାଧୀଶ୍ୱର ଶ୍ରୀଲ ଶ୍ରୀଯୁକ୍ତ ଶ୍ରୀ ମାହେଶ୍ୱରୀପ୍ରସାଦ ଦେବ

ମହୋଦୟଙ୍କୁ ଦଣ୍ଡବତ ଭେଟି

ଅର୍ପିତ ହେଲା ।

ସମ୍ପାଦକ ।



# ନିବେଦନ ।

ପ୍ରାଚୀନ କାବ୍ୟରୁ କେତେଗୁଡ଼ିଏ ଦୃଷ୍ଟାନ୍ତୋକ୍ତି ସଂଗ୍ରହ କରିବା ସକାଶେ ମୋର ପରମାତ୍ମୀୟ, ପରମାରାଧ୍ୟ ଏବଂ ପରମୋତ୍ସାହଦାତା ମାନନୀୟ ସାହିତ୍ୟ-ସୁହୃଦ ଶ୍ରୀଯୁକ୍ତ ଲକ୍ଷ୍ମୀଗଡ଼ାଧୀଶ୍ୱର ମହୋଦୟଙ୍କଦ୍ୱାରା ମୁଁ ଅନୁରୁଦ୍ଧ ହୋଇଥିଲି । ସେହି ଅନୁରୋଧକୁ ମୁଁ ଶିରୋଧାର୍ଯ୍ୟ ଆଦେଶ ମଣି ପ୍ରଥମତଃ ଭଞ୍ଜ ମହାକବିଙ୍କର କତିପୟ କାବ୍ୟ-କୁସୁମରୁ ସଦୁକ୍ତି-ମଧୁ ସଂଗ୍ରହ ପୂର୍ବକ ଏହି "ମଧୁଚକ୍ର" ନିର୍ମାଣ କରିଅଛି । ଏଥିରେ ମୋର ମଧୁପବୃତ୍ତି ଭିନ୍ନ ଅନ୍ୟ କିଛି ଯୋଗ୍ୟତା ନାହିଁ । ଯଦି କିଛି ବିଶେଷତ୍ୱ ଥାଏ, ତେବେ ତାହା ଉପରୋକ୍ତ ମହାରାଜାଙ୍କର । ଯେହେତୁ ମୂଳ ଉଦ୍ୟାନର ସନ୍ଧାନ ସେ କରି ଦେଇଅଛନ୍ତି ।

ବର୍ତ୍ତମାନ ପ୍ରଥମ ଖଣ୍ଡ ପ୍ରକାଶିତ ହେଲା । ଆଧୁନିକ ରୁଚିର ଅନୁକୂଳ ନ ହେବା ଆଶଙ୍କାରେ ସମସ୍ତ ସୂକ୍ତି ଉଦ୍ଧାର ନ କରି ମୁଁ କେବଳ ବାଛି ବାଛି ଉଦ୍ଧାର କରିଅଛି । ଏଥି ପ୍ରତି ସାଧାରଣର ଆଗ୍ରହ ଦେଖିଲେ କ୍ରମଶଃ ଅନ୍ୟାନ୍ୟ ଖଣ୍ଡ ପ୍ରକାଶ କରିବାକୁ ଉତ୍ସାହିତ ହେବି ।

ଶ୍ରୀ ଚନ୍ଦ୍ରମଣି ମହାନ୍ତି ।

# ମଧୁଚକ୍ର ।

ବୁଧଜନଙ୍କର ଶିରଭୂଷଣ ଯେହୁ,
ବନସ୍ପୃରୁ ସେ ଆନ ବାଣୀ ନ କହୁ ।

* * *

ବିକଳ କଳନା ନାହିଁ କରୁଥିଲା ରଙ୍ଗ,
ଜଳଦନିନାଦ କିବା ଶୁଣିଲା ସାରଙ୍ଗ ସେ ।

* * *

ବାତ ମଳୟାଦ୍ରିରୁ ଯେ ବହଇ ପବନ,
ବଂଶକର୍ମେ ନାହିଁ ଯଥା ହେବା ଚନ୍ଦନ ।

* * *

ବ୍ୟୁତ୍ପତ୍ତିଙ୍କର ଯେ ଉତ୍ପତ୍ତି ହୋଇ,
ଜନପଦ ଶିଶୁ ଗଜ ମାରଇ ।

* * *

ବଶିଷ୍ଠ ବୋଇଲେ ଗ୍ରହ ମଙ୍ଗଳ ବୋଲାଇ,
ବିନା ଦାନେ ଶାନ୍ତ ନୁହେ ଅମଙ୍ଗଳଦାୟୀ ।

* * *

ମଙ୍ଗଳ ଚଳନେ ଉଇଁଲା କି ଘନ ଜଳ ବରଷା ନ କରବ ।

---

ବ୍ୟାଲେ ଲୋଷ୍ଟ୍ର ପ୍ରହାରିଲା ପ୍ରାୟେ ରହୁ କହୁ,
ବିଷକଣ୍ଠେ କ୍ଷୀରକଣ୍ଠ ବୋଲୁଥିଲା କେହୁ ଯେ ।

* * *

## ମଧୁଚକ୍ର ।

ବନ୍ଧ ପକାଇ ମଧ୍ୟର          ବେନି ଭାଗ କଲ ନୀର
ଏ ବୁଦ୍ଧି ଶିଖିଲ କାହୁଁ ଏବେ ଯେ ।

*          *          *

ବଜ୍ର ସଙ୍ଗରେ ସ୍ଫଟିକ          ସମ ତୁଲ୍ୟ ଅବିବେକ
ଏଡେ ବିବେକ ନ କଲ ହୃଦେ ଯେ ।

*          *          *

ବୋଧେ ମନ ନଦୀ ସର          ତଡ଼ାଗ କୂପ ଆବର
ମୂର୍ତ୍ତି ଭିନ୍ନ ସେ ଏକ ଜୀବନ,
ବରଷା କରେ ଆବିଳ          ତା ନିଜ ଗୁଣ ନିର୍ମଳ
ଶୀତଳକୁ ନ ଛାଡ଼ନ୍ତି ଘେନ ।

*          *          *

ବିହରିବା ମାନସର          ମଧ୍ୟେ ହଂସକୁ ସୁନ୍ଦର
ଆନ ପକ୍ଷିରେ କି ସେ ବାଞ୍ଛିତ ଯେ ।

*          *          *

ବିଷ ବିଷମ ଯେସନ ସନ୍ଧି ପାଛେ ହିତ ।

~~~~~~~~~~~~~~~~~~~~

ବିଲ୍ୱ ତୁ ମୁଁ ଦାସ ଏହିରୂପେ ସଦା ହୋଇଥିବୁ ଅନୁଗ୍ରହୀ ।

\*          \*          \*

ବିଷ୍ଣୁପଦୀ ଜଳ କେତେ ନିର୍ମଳ ଯୋଷା,
ବାରିଦ ଆବିଳ ଜଳେ ଚାତକ ଆଶା ।

\*          \*          \*

ବିହ୍ୱଳ ଭୃଙ୍ଗ ପୁଣି ମାଳତୀସ୍ନେହୀ,
ବାସଙ୍ଗେ ସଙ୍ଗ ହୁଅଇ ସରାଗ ବହି ।

\*          \*          \*
~~~~~~~~~~~~~~~~~~~~

ବେଶ୍ୟା ସଙ୍ଗତ ହୋଇଲେ ରସିକ ପୁଂସ,
ବଳାଇ କି ସ୍ୱକୀୟାରେ ସେ ଅଭିଳାଷ ।

* * *

ବଡ଼କୁଳେ ଜାତ ଭୂପଭଗିନୀ ରୁଦ୍ଧ,
ବୃଷସ୍ୟନ୍ତୀ (କାମୁକୀ) ଆଚରଣ ଭଲ ତ ନୋହୁ ।

* * *

ବହ୍ନିକଣଗିଳା ଚକୋର ହେ ନାଗର,
ମଧୁକର ସ୍ୱାଦୁ ଯେନ ଲୋଭି ଚନ୍ଦ୍ରର ।

* * *

ଅକାଳରେ କାଳ ହେବା ଶଙ୍କା ନ କରି,
ବ୍ୟାଳ ମୁଖେ ଦେଲା କେହୁ କରଳୁ ଭରି,
ବ୍ୟାଳ ବୋଲି ଆନ କି ଚାଖୁକି ବଦନ,
ତାଇ ସେ ଏମନ୍ତ ପ୍ରଚେ କାହିଁ ତା ସ୍ଥାନ ।

* * *

ବୋଇଲା ଅନୁଜା ନାଗଜାତ ରାଜା ଜଗତବଇରୀ,
ବଡ଼ କି ହେବ ନେତ୍ର, ମଦେ ମୁଦ୍ରିତ ପ୍ରଜ୍ଞାଚକ୍ଷୁ ପରି ।

* * *

ବୃକ୍ଷ କରୁଣାରେ ସେ ନିର୍ବଶ ଫଳ କାହିଁ ।

---

ବ୍ୟର୍ଥ ବାଗ୍ମୀଲେ ପଣ୍ଡିତ
ବୁଝାଇଲା ପ୍ରାୟୁ ଶାସ୍ତ୍ର, ହୋଇଲା ହେମନ୍ତ ।

* * *

ବସନ୍ତଋତୁ ତ ଅନ୍ତ ହୋଇ ନାହିଁ ଗୋସ୍ୱୀ,
ବଚନ କୋକିଳ କହିଁ ଛାଡ଼ିଲା ମାଧୁରୀ ।

* * *

ମଧୁକରେ ମହୋତ୍ଫୁଲ୍ଲ ଦଶଇ ରଜନୀ,
ମଧୁ ପ୍ରତି ଅଧିକ ରଜନୀ ହେଲେ କଣୀ ।

~~~~~~~~~~~~~~~~~~~~

ଜଳମ୍ବୁ କ ମହା ପିପାସୁ ସତ୍ୱ,
ଚାଉଫୁଣ୍ଟି କାପାର ଦେଖାଅ କାହିଁ ଯେ ।

\* \* \*

ବୋଇଲା ଏ କ ରେ ଆଶ୍ଚର୍ଯ୍ୟ ମୃଣାଳର ସୂତ୍ରରେ
ବାରଣ ଯେ ବନ୍ଧା ହୋଇଲା ଶୁଣା ଗଲା କର୍ଣ୍ଣରେ ।

\* \* \*

ମନୋଦୀ ହସ୍ତରୁ ପୋଷା ମର୍କଟ ଫିଟଇ,
ମଳୁଚ ମୁଖ ଦେଖାଇ ଗୁଣ ନ ମାନଇ ।

\* \* \*

ଚପ୍ରେ ଭକ୍ତ ପଦାଘାତ ସହିଲେ ମାଧବ,
ବସ୍ତ୍ରଲେ ସହିଲେ ଏତେ କହିଲେ ସୁଗ୍ରୀବ ।

\* \* \*

ବଣା ହେଲ ଅଙ୍ଗ ଥାଉଁ ନ ରଖିଲ ସ୍ୱାରକ ହୁଟିକ ହେଜ ଯେ,
ବଣିକ ପତ୍ନୀଙ୍କୁ ହୋଇଲ ସୁବର୍ଣ୍ଣ ତୁଳରେ ତୁଳଲ ଗୁଞ୍ଜ ଯେ,
ମତୁଲ, ବାତୁଲ ହୋଇଲ ମୁହିଁ ଯେ,
ବନ୍ଧମୃଣାଳଖଣ୍ଡକୁ ଏ ଦ୍ୱିଜାସ୍ତ୍ରୀ ଶୃଙ୍ଖ ବୋଲି ଦେଲ କହି ଯେ ।

\* \* \*

ବ୍ୟବହାର ଏହା ଶୁକ୍ର ପର,
ମଳୟନ୍ତ୍ରା ସୁବର୍ଣ୍ଣ ପଞ୍ଜରୀ,
ବନ ଭବନ ଭୁବନ ଏକା କରେ,
ଭଲ ପଢ଼ାଇଛି ଜଟାଧାରୀ ।

\* \* \*
~~~~~~~~~~~~~~~~~~~~

ଅଙ୍କପିତ୍ତ ନ ଶିଶସ୍ତି ଟିଶେ        ବିନା ଜଳରେ ପଦ୍ମ ଛା ସ୍ୱଶେ,
ଯେହ୍ନେ ଅଣାବନ୍ଧରେ ନ କୁଞ୍ଜର,
ଶୁଣ ପ୍ରବନ୍ଧ ନ ମୂର୍ଖ ମୁଖେ ।

✵ ✵ ✵

ବୃହସ୍ପତି ଗଳନେ ବରଷେ ଘନ,
ବସ୍ତ୍ରରେ ତଥା ଧ୍ୱସ୍ତ କଲେ ମୋ ବନ ।

✵ ✵ ✵

ବଜ୍ର ପାତକୁ ଡର କର ଶାରଙ୍ଗ,
ବାରିଧର ଆଶା ନ ଛାଡ଼ନ୍ତି ଅଙ୍ଗ ।

✵ ✵ ✵

ବିହଗ କେତେ ନାହିଁ କେ ପାରେ ଭକ୍ଷି
ବହ୍ନିକଣାକୁ ଯଥା ଚକୋର ପକ୍ଷୀ ।

✵ ✵ ✵

ବୃଧ ନୁହେ ପାନ କରି ପୀୟୂଷ,
ବଲେଗେ ଇକ୍ଷୁରସେ ହେବାକୁ ବଶ ।

✵ ✵ ✵

ଭାସ୍କର ପ୍ରକାଶ କେତେବେଳେ ଅଚ୍ଛାଦ ପାରେ କୁହୁଡ଼ି ।

✵ ✵ ✵

ବାସୁକି ବିନା ଧରଣୀ ଧରଣକୁ କ୍ଷମ କ ମସ୍ତିଲଭାଏ ।

~~~~~~~~~~~~~~~~~~~~

ବାରସେ ହବାର ତୃଷାର୍ତ୍ତିର ତୃଷା ଯାରେ,
ବଶହେବ କି ମୁଁ ମୃଗ ମୃଗତୃଷ୍ଣାଠାରେ ।

✵ ✵ ✵

ବାଲ୍ମୀକି ଭକ୍ତିସାର ଗଗନ ଗଗନାକାର
ସାଧୁ ✵ ଲ୍ଲୀ ସାଗର ଯେଉଁ ପ୍ରକାରେ,
~~~~~~~~~~~~~~~~~~~~

ବିଶ୍ରୁତ ଲୋଚନ କର ରାମ ରାବଣ ସମର
ରାମ ରାବଣ ସମର ଖ୍ୟାତ ସଂସାରେ ।

* * *

କର୍ପୂର ଶଙ୍କର ବୋଲି ସଦାଶିବଙ୍କ,
ନ କଲେ ସେବା କଲେ ସଦା ଶିବଙ୍କୁ ।

* * *

ଭେଟାଇ ଦେଉ ଧାତା ସୁମରଣକୁ,
କେତେ କଥା ଅଛି ମୋ ସ୍ମରଣକୁ ।

* * *

ଚରଣ ଶରଣ ଲୋକଙ୍କୁ ବାସିବା କଥା ତ ଉଚିତ ନୋହୁ ।

* * *

ଏବେ ମରୁଅଛି ଝୁରି,
ଦରିଦ୍ର ରତନ ପାଇ ହରାଇଲା ପରି ।

* * *

ଦୂରେ ଥିଲେ ପାଶେ ଅଛି ଏହା ଥିରୁ ସେହ,
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦଳ,
ପ୍ରୀତି ଅଭେଦ ତାଙ୍କର,
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।

* * *

ଯେତେ ଦୂରେ ପଡ ପଡ଼ିଥାଇଁରେ ନଗଜା,
ତଥା କି ନୁହଇ ତାହା ବୃକ୍ଷ ନାମ ବିନା,
ବନ୍ଧୁ ହେମନ୍ତ ମୁଁ ତୋର,
ସବୁଠାରେ ବୋଲୁଅଛି ସୁନ୍ଦରୀଦୋସ୍ତର ।

* * *

ଶିବେ ଆଶେ କରି ବୃଷ,
ଘାସ ଗ୍ରାସ ପ୍ରାପ୍ତେ ତ ନ ଗଲା ମୋର କ୍ଲେଶ ।

* * *

ଏବେ ଅନୁଭବ ହେଲା,
ଗହ୍ୱରେ ମଙ୍ଗଳ ପଦ ଯେମନ୍ତ ରହିଲା ।

* * *

ରାହୁ ଦଶା ପ୍ରାପ୍ତେ ମୋର,
ସୁଧାପାନ ଉତ୍ତାରୁ ଛେଦନ ହେଲା ଶିର ।

* * *

ଚନ୍ଦ୍ରକୁ ଚକୋର ଜଳଧରକୁ ଚାତକ—
ପ୍ରାୟ ଚୋଟେ କରଥାଇଁ ମୁଁ ଆଶା ଅନେକ ।

* * *

ନଷ୍ଟ ସଦୃଶେ,
ରସିଲା ମନ ଷ ଲେଉଟି ଆସେ ।

* * *

ସୁନା ଦହନ,
ରଖିଲେ ଅଧିକ ବଢ଼ଇ ବାନ ।

* * *

ପ୍ରଭା ମୂଲ୍ୟ କି ତୁଟେ ରତ୍ନ ମଣିର ଜୀର୍ଣ୍ଣ ବସନରେ ଥିଲେ ।

* * *

ପଙ୍କଦୂଷିତ ଜଳେ ଥିଲେ କୁମୁଦ ଚନ୍ଦ୍ର କି ପ୍ରୀତି ନ କରେ ।

* * *

ଭୃ. ହୋଇଥିଲେ ଦୋଷୀ　　ପ୍ରଭୁ ହୋଇଲେ ରୋଷୀ
ଅଛି କି ଉପାୟ ସରଳ ।

* * *

ଉମା ଶିବ ମନୋହାରୀ
ଗଙ୍ଗାଙ୍କୁ ବହିଲେ ଶିରେ କ୍ଷୋଭ ସେ ନ କରୁ ।

* * *

କଙ୍କଣ ଶିଳାକୁ ଜଳୌକା ନକି ହୁଏ ଦଂଶକ,
କାଉଣିକେ କିଛି ନ ଦଶେ ହେଉଁ ପ୍ରାତ ଅଲୋକ ।

* * *

ସ୍ୱଭାବ ଏକ ଉଲ୍ଲୁକ ଖଳ ଏହୁ ବେନ,
ସନ୍ତୋଷ ସେ ଦୋଷୋଦୟ ଦୋଷୋଦୟ ଯେନ ଯେ ।

---

ଶୁଣି ହସି ବୋଇଲେ ଯଦୁରାୟ,
ସାରଙ୍ଗ ଅଙ୍କୁଶ ତୁରଙ୍ଗ କଶକା ନ ମାନିଲେ କି ଉପାୟ ।

* * *

ସ୍ୱବଲସ୍ଥ କେହୁ ନାହିଁ କର୍ମକୁ,
ସିଦ୍ଧ କରେ କେତେବେଳେ ବାମକୁ ।

* * *

ସୁଜ୍ଞାନୀ କି ଶୁଣିଲା ବ୍ରହ୍ମଜ୍ଞାନ,
ସରୀସୃପ ମନ୍ତ୍ରେ ଲୟ ହେଲା ପ୍ରାୟେ ସେ ବାଣୀରେ ହେଲା ମନ ।

* * *

ସୂତ ଯେନ ଭେଦ ଲୋଡ଼ଇ ଶୈଖରୀ,
ସୂକ୍ଷ୍ମ ସୂତ୍ରରେ ବାନ୍ଧ ଲୋଡ଼ କରୀ,
ସୃଷ୍ଟି ପ୍ରଳୟ ଜଳ ଚକ୍ର ହୁଏ କି ଲୋଷ୍ଟ୍ରେ ଚୂର ହୁଏ ଗିରି ।

* * *

ସହଜେ ଅଙ୍କୁଶ ଲଙ୍ଘା ଯୁବତୀଙ୍କି ସତରାଣୀ ନୃପତିକି
ସେ ନ ମାନିଲେ କି ବୁଦ୍ଧି ଏଥିକି ।

* * *

ସଙ୍ଗୋଷେ ଚନ୍ଦ୍ରର ଶଶ ନାଶ ଗଲା କାହାକୁ ହେଲା କଳଙ୍କ ।

* * *

ସ୍ୱୟଂ ରତ୍ନ ହେଲେ ମୂଳ କରମ,
ସିନ୍ଧୁ ମନ୍ଥନ ଛଡ଼ାଇଛୁ ଭ୍ରମ,
ସୁରେ ସୁଧା, ବିଷ୍ଣୁ କମଳା ଲଭିଲେ ବିଷ ପାନ କଲେ ଭୀମ ।

* * *

ସତ୍ତ୍ୱ କେତେ କି ଜନ୍ତୁର ନ ଡରିଲେ ଅନଳ ନିକଟ ହୋଇଲେ ।

* * *

ତୃଷାର୍ତ୍ତୀ ଯିବା ସଲିଳ ପାଶେ ଉପଗତ,
ପାଣି ତୃଷାର୍ତ୍ତୀ ପାଶକୁ ଆସେ କି ଯେଉଁ ତ ।

* * *

ଜଳ ସନ୍ନିଧିକି ଜଳ ପାନ କରି ଗଲେ,
ତାହା ଅସନମତ ହୋଇଛି କେଉଁ କାଳେ ।

* * *

ଗଜ ବଳବନ୍ତ ହୋଇ ଅଙ୍କୁଶ କି ନ ମାନଇ,
ଶଶୀ କ୍ଷୀଣ ଯେ ହୁଅଇ କଳା ତା ବୃଦ୍ଧି କରଇ ।

* * *

ଯେତେ ଦୃଢ଼ ଚିତ୍ତ କଲେ ପାରଇ କି ରଖି
ବୃଦ୍ଧି ଦଉଡ଼କୁ ଟାଳି ଚଞ୍ଚ ନିଜ ପକ୍ଷୀ ।

* * *

ପ୍ରଚଣ୍ଡ କିରଣେ ରବି ଶୋଷଇ ନଳିନ,
ଅଳି କେଳିରେ ନୁହଇ ଶିରୀଷ ମଳିନ ।

* * *

ଅମରେ ଭୋଗ କରନ୍ତି ରକ୍ଷି ଶଶୀ ଶେଷ,
ଲତାରୁ କଳିକା ଛିଡ଼ି ହୋଇ ସୁମନସ ।

* * *

ବିଧି ତୋଲନ୍ତି ବିଧାତାଙ୍କୁ କାହିଁକି ଅବିଧି କଲୁ ତ,
ଅମୃତ ଭୁଞ୍ଜାଇ ପିଚୁମର୍ଦ୍ଦ ଛଦ ତାମ୍ବୂଳ ଦେଲୁ ତ ।

* * *

ରାହୁଗ୍ରାସେ ଅଶୁଚି କି ହୁଏ ସୁଧାକର,
ଅମରେ କରନ୍ତି ତହିଁ ଅମୃତ ଆହାର ଯେ ।

* * *

ଏହା ଲେଖି ଦେଇ ଗଲୁ ଝଡ଼ି ଅକ୍ଷରେ,
ଆତୁର ନ ପାଏ କାର୍ଯ୍ୟ କେଉଁ କାଳରେ ।

* * *

ବିଷବୃକ୍ଷ ସ୍ଥାପି ନାଶ କରିବାର ଦୋଷ ।

* * *

ବ୍ୟାଧିବନ୍ତର ବାଞ୍ଛିତ ଉପଚ୍ଚର ବୈଦ୍ୟ ବିହଲାର ପରି ।

* * *

ଗୁରୁଦ୍ରୋହୀ ପୁଣ ସ୍ୱର୍ଗଭୋଗ ପାଇଛି,
ସାତ ସିନ୍ଧୁ ଚଳୁ ଭିତରରେ ରହିଛି,
ପକ୍ଷ ବିନା ହୋଇଅଛି ଗଗନ ଗତି,
ଜଳ ଉପରେ ଶଇଳ ଭସି ଅଛନ୍ତି ।
ଯେଉଁ ଦଇବେ ହୋଇଛି ଏତେ ବିଧାନ,
ସେହି ଦଇବର କିବା ଅସାଧ୍ୟ ଆନ ।
ସୁଧା ପାନ କଲୁ ରାହୁ ଉପାୟରେ,
ପ୍ରୀତି ହୋଇଅଛି ଚନ୍ଦ୍ର କୁମୁଦରେ,
ଗୁଞ୍ଜ ତୁଲା ହୋଇଛି ସୁବର୍ଣ୍ଣ ତୁଲେ,
କର୍ମ ସବୁ ଉଚ ନୀଚ ପାଞ୍ଚ ବଳେ ।

* * *

ସୁବର୍ଣ୍ଣ ପୀଢାରେ ବଶ ଶ୍ରୀରାମ,
ଯାହାର ଯତ୍ନରେ ବଳଇ ପ୍ରେମ।

* *

ପୁଣି ବୋଲଇ ହେ ଜାଣି ମୁଁ ନ ଥିଲି ଦଇବ ରୁ ଏଡ଼େ ଦାରୁଣ,
କ୍ଷୁଧାତୁରକୁ ସୁଧା ତୁଲ୍ୟ ଭୋଜନ ପରଶିଲ୍ କେଉଁ କାରଣ,
ଭୁଞ୍ଜି ବସିବା ବେଳେ କୁଳଶ ଦୃଷ୍ଟି କଲ୍,
ଯେବେ କଲ୍ ତେବେ ପରାଣ ନ ନେଲ୍ ଏଡ଼େ ବ୍ୟାକୁଳ କପାଁ କଲ୍ ।

* * *

ବୋଲେ ନାଗରୀ ସାଗରେ ସ୍ନାନ କରି ଯେମନ୍ତ ତୃଷା ନ ତୁଟିଲା,
କଳ୍ପତରୁରେ ଫଳ ନାହିଁ ଯେମନ୍ତ ତେମନ୍ତ ଦଶା ତ ଘଟିଲା।

* * *

ସବୁ ବଡ଼ ଦଇବ,
କାହା ମନେ ଥିଲା ଅଗାଧ ସମୁଦ୍ର ଗଡ଼ୁ ଭିତରେ ସମ୍ଭାଇବ ।

* * *

ପବନକୁ ପାଶ ପାଢ ବସିଥିଲେ ସେ କାହିଁ ହୋଇବ ବନ୍ଧନ ।

* * *

ତୁଳାପାଟେ ଗୁଣା ଅଧିକ ପଦାର୍ଥ ପଡ଼ିଲେ କି ସମ ହୋଇବ ।

* * *

ଦୁର୍ବଳ ମାରିବାକୁ ସମସ୍ତେ ଆଗ,
କାମକୁ ମହାଦେବ କଲେ ଅନଙ୍ଗ ଯେ ।

* * *

ଜୀବନ ଥିଲେ ହୁଏ ସବୁ ପ୍ରାପତ,
ହୁଅଇ ସମ୍ଭାବତ ଅସମ୍ଭାବତ ଯେ ।

* * *

ଭସ ପୁଣି ଦେଖା ନ ଯାଏ ଯଦି ଥାଇ ଜୀବରେ,
ବିଷମ ସମସ୍ୟା ପୂରଣ ହେଲା ଏହିଠାବରେ ।

* * *

ଅଳସ ହେଲେ କାର୍ଯ୍ୟ ନୁହଇ ବେଗ,
କାଳକୁ ଚାହିଁ ଭୋଗ ହୁଅଇ ଯୋଗ ଯେ ।

* * *

ଦଶହିଁ ହୁଏ ହତ ସନ୍ନିପାତରେ ।

* * *

ଚନ୍ଦ୍ର, ଲଭଙ୍ଗ, ମଲ୍ଲ ଉସ୍ତାରୁ ଶଙ୍କା ।

* * *

କୋଟି କଲ୍ଲେ ଏ କଥା ହୋଇନ୍ତି ନଙ୍କ ଆନ,
ଘନ ଦେଇ ଗଙ୍ଗା ଜଳେ ଗୃଧ୍ରଙ୍କର ମନ ଯେ ।

* * *

ନାରିକେଳ ଯେ ରସପୂର,
ଭକ୍ଷି ନ ପାରଇ ବାନର,
ଛାର କି ସ୍ୱାଦୁ ଯଶ ନୋହୁ,
ପ୍ରସଙ୍ଗୁ ଗଲି ମଧ୍ୟ କହୁ ।

* *

ହୃତ ହେଲେ ମିଥ୍ୟା କହ,
କାର୍ଯ୍ୟକାଳେ ମିଥ୍ୟା କହିବାର ଦୋଷ ନାହିଁ ।

* * *

ଚୂତ ମୁକୁଳ ଅଶନ
ହୋଇଲେ ହିନା କହଇ କୋକିଳ ବଚନ ।

* * *

ନମ୍ରନ ନ ଥାଇ ଦେବ ଦରଶନେ ଗଲ ପ୍ରାପ୍ତ ଉପହାସ ।

* * *

କି ବୋଲି ବୋଲିବି ମଶାଙ୍କ ମଶଙ୍କ ପଣ୍ଡିଏ ଉମ୍ମୁକ୍ତ ମନ ।

* * *

ପର ଉପକାର ଯଶ ଥୋଇଲେ,
ଦେଖ ମହାଦେବ ବିଷ ଖାଇଲେ ।

* * *

ଅନଳେ ଦହିଲେ ସ୍ୱବାସକୁ ନାହିଁ କେବେ ଛାଡ଼ଇ ଚନ୍ଦ୍ର, ଚନ୍ଦନ ।

* * *

ମୂର୍ଖକୁ ବୁଝାଇବାର ଅଛି କଷ୍ଟ ଜାଣ ।

* * *

ସଖୀ କହିଲେ ଦୁଃଖ ସହ ଧଇର୍ଯ୍ୟ ହେଲେ କାର୍ଯ୍ୟ ଲଭ ଅବଶ୍ୟ,
ହର-ଅରଘାତ ସହି ରହିଲାକୁ ରାହୁ ପାଇଛି କି ପୀୟୂଷ ।

* * *

ଦେଖ ଅନଳ, କାଷ୍ଠକୁ ନଷ୍ଟ କରି ମରେ ।

* * *

ରୋଗ, ଋଣ, ଶତ୍ରୁ ଶେଷକୁ ରଖିଲେ ଆପଣାର ବାଧା ଯେ କଥା ।

* * *

ବଡ଼ ହୋଇ ବିଷ ହୋଇବ,
ଅର୍ଜିଲା କର୍ମ ସିନା ଭୋଗ ହୋଇବ,
ସାଗର ମନ୍ଥନେ ଗରଳ ପାଇଲେ ଭଗ କରନ୍ତି ମହାଦେବ ।

* * *

ଦୁଇ କରେ ଭୁଞ୍ଜେ ଭୋଖି ହେଲେ କି ସଖୀ ।

* * *

ଭ୍ରମରରୁ ପ୍ରବେଶ ପଦ୍ମବନ କରେ ଧ୍ୱଂସ
ମୂଳ ଥିବାରୁ ବସନ୍ତେ ପଲ୍ଲବେ ସତେ ।

* * *

ମଧୁମକ୍ଷି ଉଚ୍ଛିଷ୍ଟ ଅମୃତାଦର ସରେ ।

* * *

ଏ କଥା ଭାବ ତୁ ଚିତ୍ତ, ମଧୁମକ୍ଷିକା ସଞ୍ଚିତ
ଦେବଭୋଗ୍ୟ ହୁଏ କେହ୍ନ, ଭଗ୍ନର ସହ୍ୟ ଗୋ ।
ଫଣୀ ଜାଗ୍ରତେ ଚନ୍ଦନ ଥିଲେହେଁ କର ଭାବନ,
ଭୋଗ ହେଉଛି କି ନାହିଁ, ପରିଣସହ୍ୟ ଗୋ ।
ଯେବେଟି କୁସୁମ ଫୁଟେ, ତେବେ ସୁଗନ୍ଧ ପ୍ରକଟେ,
ଯହିଁ ତହିଁ ନଦୀ ଜଳ, ସମୁଦ୍ରେ ଠୁଳ ଗୋ ।

* * *

ଜଳକଲସେ ଚନ୍ଦ୍ରବିମ୍ବକୁ ଧରି,
ପାରିଲ ନାହିଁ ସୁଧା ଭୋଗକୁ କରି ଯେ ।

* * *

ଏମନ୍ତ ଆଣ ଚୋର ଅବଧାନକୁ ,
ପ୍ରଭୁ ସେ ବଢ଼ କରେ ଦାସ ଜନକୁ ।

* * *

ତୁଷାର ନାଶ କରେ ଜନମସ୍ଥାନ ।

* * *

ସୁରେନ୍ଦ୍ର ଦଗରଙ୍ଗ କି ରଥାଙ୍ଗ ଗୃହିଁଲ,
ସୁଦର୍ଶନ ଦେଖିଲ କି ଚୂତ ବକୁଳକୁ ।
ସୁମନା ବିକାଶ କରା ମଧୁକର ଗୃହିଁ,
ଶାଳଅନ୍ନ ମାପୋପବାସୀକି ଦେଲ ବହୁ ।

* * *

ସରୁ କାଳେ ବଡ଼ ହୋଇ କେ ନାହିଁ ମନକୁ,
ସ୍ୱର୍ଗ ତେଜି ଗଙ୍ଗା ଲଭେ ଲବଣସିନ୍ଧୁକୁ ଯେ ।

* * *

ବଲ୍ଲୀଠାରୁ କାମୁକୀ ବଳ ନାହିଁ,
ବିନୋଦକୁ କମ୍ରେ ଯେଣୁ ଦେଇଁ.

ବହଇ ଯେ ସମ୍ଭୋଗକୁ ମଧୁପ,
କେବେ ସବୁ କାଳରେ ଅନୁରୂପ ।

( ଅର୍ଥ ଲଜ୍ଜାଠାରୁ ବଳ କାମୁକୀ କେହ ନାହିଁ, ସେ ପୁଷ୍ପବତୀ ହେବାମାତ୍ରେ ସମ୍ଭୋଗ ଦିଏ । ତାକୁ ସମ୍ଭୋଗ କରୁଥିବା ଭ୍ରମର ମଧ୍ୟ ସେହିପରି କାମୁକ । ସବୁ କାଳରେ କାମୁକ କାମୁକୀ ହୁଅନ୍ତି ଅବାଧ ଆଚରଣ କରନ୍ତି । )

* * *

ପୁରାଣ ଅଭିଧାନ ଜାଣିଥିଲେ,
ଜାଣି ହସ ହେବ ବହୁତ ହେଲେ ।

* * *

ସବୁ ଭଲ ବର୍ତ୍ତୁଳିଳୀ, (କପାଳ ଲେଖନ)
ଆଜଯାଏଁ କେହ ତାହା ପାଉ ନାହିଁ ବଳ ।

* * *

ଉଣା ଅଧିକେ ସଂଯୋଗ ପୂର୍ବରୁ ହୋଇଛି,
ଶଶ ରହୁ ଚନ୍ଦ୍ରେ, ରାହୁ ପୀୟୂଷ ପିଇଛି ।

* * *

\+ \+ ଶିରୋଧାର୍ଯ୍ୟ (କେଶ)

ଫେଇ ସୁଗନ୍ଧ ଧୂମେ ଧୂପ ଦେଇ,
ଗଜଦନ୍ତ କଙ୍କତିକା ଚଳାଇ,
ସେ ଏମନ୍ତ ଦିଶି,
ଜଳଦ ପରେ ଧାମେ ଅର୍ଦ୍ଧଶଶୀ ।

* * *

ଯେସନେ ପାନଜନ ମତ,
ଧନ- ଲଭିବା ଲୋଭ ଅତ ।

* * *

ସ୍ୱୀର (ପିମ୍ପୁଡ଼ି) ବୁଦ୍ଧିର ଅଛି ଚନ୍ଦ୍ରବିମ୍ବ ଚୁମ୍ବି ଇଚ୍ଛି,
କେମନ୍ତେ ହୋଇବ ଏ ସମ୍ଭବେ ନ ଆସୁଁଛି ଯେ ।

* * *

ରହିବାକୁ ଅମୃତ ଚନ୍ଦ୍ରମା ସିନା ସ୍ଥାନ,
ବୈଦ୍ୟୋକ୍ତି ଯେ ଯହିଁ ରସେ ସେହି ସେ ପ୍ରଧାନ ।
ଉମାସ୍ୱସା, ହ୍ରିବିଷ୍ଣୁପଦ ଶିବ ଶିରସ୍ଥାୟୀ,
ଦେଖ ଗଙ୍ଗା ଲବଣସାଗରେ ସଙ୍ଗ ପାଇ ।

* * *

ପରମପାବନୀ ତୀର୍ଥଙ୍କର ଯେତେ ଥିଲେ,
ମୃତକ ତତ୍ତ୍ୱ ରସିତ ଘେନ ଧନଜନେ ।
ବିପ୍ର ବୋଲେ ଜଳ ଜଡ଼ ସବର୍ତ୍ତିକୁ ଅଛି,
ବିବେକଶୂନ୍ୟରେ ପଶୁ ପକ୍ଷୀ ସମେ ଲକ୍ଷି ।

* * *

ଗନ୍ଧବତୀ ସାର ରସବତୀ ଯେ ପଦ୍ମିନୀ,
କୋମଳା ଏ ପ୍ରଶଂସାରୁ ଆନ କି କାମିନୀ,
ସେ ଚଣ୍ଡାଂଶୁ ସ୍ନେହ ବଶ, ଥାଉଁ ଚନ୍ଦ୍ରପ୍ରୀତି,
ତାର ପ୍ରକାଶେ ପଦ୍ମିନୀ ନୟନ ମୁଦନ୍ତି ।
ବୃନ୍ଦାବତୀ ଜଳନ୍ଧରେ ହେବାରୁ ଲୋଲୁପ,
ଭଗବାନ ଦିବ୍ୟରୂପ ଦେଖି ଦେଲା ଶାପ ।

* * *

ସବୁଠାରୁ ମୂଳ କର୍ମ (ଅଦୃଷ୍ଟ) ଦୁର୍ଲ୍ଲଭ ଲଭଇ
ଉଦ୍ୟମେ, କର୍ମବିପାକେ କାର୍ଯ୍ୟକୁ ନ ପାଇ ।
ସିନ୍ଧୁ ମନ୍ଥନରେ ଶ୍ରମ କରଣ ଅସୁରେ
କ୍ଷମ ନୋହିଲେ ସେ ଅତି ଅମୃତପାନରେ ।

* * *

ଭୋଗ ଈଶ୍ବରେ ଶ୍ମଶାନ ଗ୍ରାସପରେ ଲଙ୍କା,
ଏ କଥା ସ୍ମର ମନେ ଥିଲା ବଡ଼ ଶଙ୍କା ।

* * *

ଅନୁତ୍ତମ (ମଧ୍ୟମ) ଭମ (ସ୍ୱଦୃଷ୍ଟ) ସୁଧା ପିଇଛି,
ସ୍ୱମେ ସୁଗ୍ରୀବବନ୍ଧୁ ମିତ୍ର ହୋଇଛି,
ଭ ଅଦୃଷ୍ଟରେ ଏ ବିବେକ ଉପୁଜ କଷ୍ଟ କଷ୍ଟରେ ରହିଛି ।

* * *

ଭୃତ୍ୟ ଜଣାଇବା କଥା ଉଚିତ;
ଯେହୁ ପ୍ରଭୁ ଭାବ ସବୁ ଅସୃତ୍ତ ।

* * *

ଭାରକର (ରକ୍ଷକର) ପକ୍ଷପାତପାଇଁ
କୂଳେ ଭେଲା ପୁଣି ଭସିଯାଇ,
ଏଥୁ ଭମହାର ଅଛି କି ବିଶ୍ବର ଏବେ କରୁଯେ ହୋଇବ ବାନ୍ଧ ।

* * *

କୃପା-କଳ୍ପଦ୍ରୁମ ଯେ ବୋଲଇ,
ଅଗୋଚର ଫଳକୁ ନ ଦେଇ,
ଆଶା ବଳି ଜନ କର୍ମ ଆଦରଲେ ଏଥୁଁ ଅସିବ କେଉଁ ବଡ଼ାଇ ।

* * *

କରୁଣାର ରତ୍ନାକର ହୋଇ,
ଯେହୁ କଳାରଙ୍ଗ ରତ୍ନଦାୟୀ,
କେବଳ ମିଳିଲା ଜନ ଜରଜର କେବେ ତୃଷ୍ଣା ତୃଷା ନ ତୁଟଇ ।
ବୋଇଲା ଆଳୀ ଝମ୍ପାଇ ଭିତ୍ତି,
ବୋଇଲା ତୁଏ କରମ ବନ୍ଧି,
କହୁଅଛି ସମୁଦ୍ର ରତ୍ନ କେବଳ ନଦେଇ ଯେ,

ନରେ ସମସ୍ତେ ଇନ୍ଦ୍ର ହୋଇଛ,
ନରେ ଧରଣୀ ଟେକି ଧରଛ,
ଏ ସ୍ୱୟମ୍ବରେ ସୁଯୋଗ ଅଛି ଭ୍ରମରବରେ ଯେଁ ।

* * *

ବେଦବଚନକୁ ବଳି ନାହିଁ ବଳାତ୍କାରେ,
ଅବଳା ପଦ ଧରିଇ ବଳବନ୍ତ କରେ ।

* * *

କସ୍ତୁରିବା କସ୍ତୁରିକା ଖଳ ଜିହ୍ୱାମୂଳେ
କରଇ ନିବାସ ବୋଲୁଅଛି କାଳେ କାଳେ ।

* * *

କୋବିଦ ହୁହୁ ଆଶମ୍ଭ ଶ୍ଳୋକ ପରକାର,
କଦାଚିତେ କାହା ଠାରୁଁ ନୋହିଲେ ଅନ୍ତର । (କୃଷ୍ଣ)

* * *

ଘାସ ଅଶନ ପୁଣ ବୃଷ ନ ଛଡ଼େ ସଙ୍ଗ ଯୋଗେ ସଙ୍ଗ ମିଳଲେ ।

* * *

ଘନରସ ପାନ ଚନ୍ଦ୍ର କର ହେଲେ ଚକୋର ତୃଲଙ୍ଗ ଆହାଣ ।

* * *

ଧରି କି ଯାଏ ବାରଣ ଆରଣ (ବେଢ଼ି) ବନ୍ଦୁ ଚରଣ,
ଜଳଜ ନାଳ ସୂତ୍ରେ କଲେ ବନ୍ଧନ,
ଧୂମାଚ୍ଛନ୍ନେ ଗୁପ୍ତ ସୂର୍ଯ୍ୟ କି,
ଧରାଧର ଆନ ବୃଦ୍ଧି ନଦୀଙ୍କ ନଙ୍କ ।

* * *

ଧ୍ୱଂସ କରେ ମହାଦାରୁ     ଚରୁ ପବନ ପ୍ରଚଣ୍ଡ
ଦୂର୍ବା କି ମହୀସ୍ଥଳରୁ ଉପାଡି ପାରେ ।

* * *

କୁଳିଙ୍ଗ ଭକ୍ଷେ ଚକୋର ଥାଉଁ କଳାନିଧି ।

* * *

ଫୁଲ ଭ୍ରମର ପୀରତି କେତେ କାଳ ଥାଇ ।

* * *

ଫଳ କି କାର ପ୍ରୀତିରେ,

ସ୍ଫଟିକ ପଶ୍ଚ ସେ ନାନା ରାଗ ହୃଦେ ଧରେ ।

* * *

ଭୁଜଙ୍ଗେ ସେନେହୀ ହୋଇଲା ଜନର ଜୀବନକୁ ଆଶା କାହିଁ ।

* * *

ମାଣିକକୁ ଗୁଣିକ ବଣିକ ସିନା ଯେନେ,

ମହାରଣ୍ୟବାସୀ ପରଖିବ କି ଯତନେ ।

* * *

ଶରୀରଠାରେ ହିତ କଫ ଜଳ ଯେମନ୍ତ

ସନ୍ନିପାତରେ କରେ ନାଶ ।

* *

ଶୁକ୍ତିରୁ ମୋତି ଜାତ ଈଶ୍ବର ଏ କେମନ୍ତ

ବସୁଛି ଦେବତାଙ୍କ ଶିରେ ।

* * *

ନାହିଁ ନୃପକୁ ପ୍ରତିଉତ୍ତର ପୁଣି,

ଯଥା ସ୍ୱର୍ଗ ଯିବାକୁ ନାହିଁ ନିଶ୍ରେଣୀ ।

* *

ପ୍ରତିବସ୍ତୁ ଅନ୍ତରେ ଅକ୍ଷର ରହି,

ନେତ୍ରକୁ ଗୋଚର କି ନୁହଇ ସେହି ।

Printed by V. Kar, the Utkal Sahitya Press, Cuttack.